ISSN: 2456-9194, Vol. III, Issue. I, June 2019

ପ୍ରତ୍ୟୟ

(Journal of Odia Language, Culture and Science)

JournalHomepage:http://cphfs.in/research.php



# ପଶୁ, ମଣିଷ ସମ୍ପର୍କର ଏକ ତ୍ରିକୋଣୀୟ ମନୋବିଶ୍ଳେଷଣ-ଗଳ୍ପ ‘ମାଙ୍କଡ ଦିଆଶି’

**ଡ. ମମତାରାଣୀ ବେହେରା**

ଡି.ଡି.ସି.ଇ, ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର

Email:mamatab712@gmail.com

***ସଂକ୍ଷିପ୍ତସାର:*** *ଏକ ତ୍ରିକୋଣୀୟ ସମ୍ପର୍କ ଅଥବା ପ୍ରେମକୁ ନେଇ ଗତିଶୀଳ ହୋଇଛି ଗାଳ୍ପିକ ନିତ୍ୟାନନ୍ଦ ମହାପାତ୍ରଙ୍କ କାଳଜୟୀ ଗଳ୍ପ-‘ମାଙ୍କଡ ଦିଆଶି’ । ଲଡ୍ଡା ମିଆଁ ଅଥବା ମହମ୍ମଦ ହତିଫ୍‌କୁ ଗଳ୍ପର ମୁଖ୍ୟ ଚରିତ୍ର ଭାବେ ଗ୍ରହଣ କଲେ  ମିଆଁର ବିବି ଜୟତୁନ ଏବଂ ମାଙ୍କଡ଼ ଦିଆଶିକୁ ତାର ଜୀବନ ସଂଲଗ୍ନ ଦୁଇ ସମାନ୍ତରାଳ ସହ ଚରିତ୍ରଭାବେ ଆଲୋଚନା କରାଯାଇପାରେ । ଜଣେ ଲଡ୍ଡା ମିଆଁର ଜୀବନ ଜୀବିକାର ବିବାକ୍ ସହଚର  ଓ ଅନ୍ୟଜଣେ ଜୀବନ ଭୋଗିବାର ଚିର ବିରହିଣୀ ସହଚରୀ। ଏହି ଗଳ୍ପଟିରେ ମଣିଷ,ପଶୁ ଓ ମଣିଷ ମଧ୍ୟରେ ଯେଉଁ ମନସ୍ତାତ୍ତ୍ୱିକ ବିଶ୍ଳେଷଣ କରାଯାଇଛି, ତାହା ଆଧୁନିକ ଓଡିଆ ଗଳ୍ପରେ ଏକାନ୍ତ ଅନନ୍ୟ ।*

***ପ୍ରମୁଖ ଶବ୍ଦ:*** *ମନୋବିଶ୍ଳେଷଣ, ମାଙ୍କଡ ଦିଆଶି, ଜୀବନ ପ୍ରବୃତ୍ତି, ମରଣ ପ୍ରବୃତ୍ତି, ମନୋବିଜ୍ଞାନୀ*

ସାହିତ୍ୟରେ ‘ମନସ୍ତାତ୍ତ୍ୱିକ ବିଶ୍ଳେଷଣ’ର ପ୍ରୟୋଗ କଥା ସାହିତ୍ୟରେ ବିଶେଷ କରି ଉପନ୍ୟାସରେ ହିଁ ସର୍ବପ୍ରଥମେ ପରିଲକ୍ଷିତ ହୋଇଛି । *ଆଦିକାଳର* ସାହିତ୍ୟରେ ମନସ୍ତତ୍ତ୍ୱର ପ୍ରୟୋଗ ରହିଥିଲେ ବି ତାର ସ୍ୱରୂପ ଥିଲା ଭିନ୍ନ । ସେସବୁକୁ ମନୋବିଜ୍ଞାନର ସଂଜ୍ଞା ଓ ସ୍ୱରୂପ ଦୃଷ୍ଟିରୁ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ନ କହି ବର୍ଣ୍ଣିତ ଚରିତ୍ରଗୁଡ଼ିକର ମାନସିକ ଅବସ୍ଥାର ଚିତ୍ରରୂପେ ଗ୍ରହଣ କରାଯାଇଛି । ମନସ୍ତାତ୍ତ୍ୱିକ ରଚନାରେ ମନୋବିଜ୍ଞାନୀମାନଙ୍କର ଗବେଷଣାଲବ୍ଧ ଜ୍ଞାନ ପ୍ରସୂତ କିଛି ତଥ୍ୟ ଓ ତତ୍ତ୍ୱ ନିହିତ ଥାଏ । ମାତ୍ର, ଚରିତ୍ରଗୁଡ଼ିକର ମାନସିକ କ୍ରିୟାର ଚିତ୍ର କହିଲେ କେବଳ ମନର ବିଭିନ୍ନ ଅବସ୍ଥାକୁ ବୁଝାଯାଏ । ପ୍ରାଥମିକ ପର୍ଯ୍ୟାୟରେ ରଚିତ ଉପନ୍ୟାସଗୁଡ଼ିକରେ ପ୍ରାୟତଃ ଏହିପରି ଚରିତ୍ରଗୁଡ଼ିକର ମାନସିକ ସ୍ଥିତିର ଉପସ୍ଥାପନା କରାଯାଇଅଛି। କେତେବେଳେ କେମିତି ସ୍ଥାନବିଶେଷରେ ଚରିତ୍ରଗୁଡ଼ିକ ମନରେ ଦେଖାଦେଇଥିବା ଦ୍ୱନ୍ଦ୍ୱର ଚିତ୍ର ସୂଚିତ ହୋଇଥିଲେ ସୁଦ୍ଧା ସେମାନଙ୍କ ମନ ଗହନର ଅନ୍ଧାରୀମୂଳକର କୋଣ ଅନୁକୋଣକୁ ତାହା ବିଶେଷଭାବେ ଦେଖାଇ ପାରିନାହିଁ । ସେଇଥିପାଇଁ ଚରିତ୍ରମାନେ ମାନସିକ ସଂଘର୍ଷ କିମ୍ବା କୌଣସି ଜଟିଳ ଜୀବନବୋଧର ସୂକ୍ଷ୍ମ ଅନୁଶୀଳନ ହୋଇନାହିଁ; ଯାହା କିଞ୍ଚିତ୍  ପରବର୍ତ୍ତୀ କାଳ ସାହିତ୍ୟରେ ପରିଲକ୍ଷିତ ହୋଇଛି ।

ଊନବିଂଶ ଶତାବ୍ଦୀର ଶେଷଭାଗ ଏବଂ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ବିଶେଷ *କରି* ପ୍ରଥମ ବିଶ୍ୱଯୁଦ୍ଧ ପରବର୍ତ୍ତୀ କାଳରେ ପାଶ୍ଚାତ୍ୟ ଜ୍ଞାନବିଜ୍ଞାନର ପ୍ରଭାବ ଓ ପ୍ରତିକ୍ରିୟା ଆଧୁନିକ ମଣିଷ ଚିନ୍ତା ଓ ଚେତନାକୁ ଅଧିକ ଭାବେ ନିୟନ୍ତ୍ରଣ କରିଛି। ଫଳରେ କାର୍ଲମାକ୍ସ, ଆଇନଷ୍ଟାଇନ୍, ଆଦି ବହୁ ଚିନ୍ତାନାୟକମାନଙ୍କର ନୂଆ ନୂଆ ତଥ୍ୟ ସହିତ ଫ୍ରଏଡଙ୍କ ମନୋବୈଜ୍ଞାନିକ ସିଦ୍ଧାନ୍ତ ଦ୍ୱାରା ସାହିତ୍ୟର ଏକ ନୂତନ ଦିଶା ଉନ୍ମୋଚିତ ହୋଇଛି । ଫ୍ରଏଡଙ୍କ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ମଣିଷ ସମ୍ପର୍କରେ ନୂତନ ବିଚାରବୋଧ ଦର୍ଶାଇଛି। ନୂତନ ମନୋବୈଜ୍ଞାନିକ ସିଦ୍ଧାନ୍ତ ବ୍ୟକ୍ତିର ଅନ୍ତର୍ମୁଖୀ ଚେତନାକୁ ଉନ୍ମୁକ୍ତ କରିଛି। ମୋହଭଙ୍ଗ, ଧର୍ମ ଓ ନୈତିକତା ପ୍ରତି ଅବିଶ୍ୱାସ ତଥା ସାମାଜିକ ପରିବେଷ୍ଟନୀ ସହ ବ୍ୟକ୍ତି ମଣିଷର  ଦ୍ୱନ୍ଦ ଫଳରେ ବ୍ୟକ୍ତି ନିଜର ଅନୁଚିନ୍ତା ଓ ଅଭିରୁଚିକୁ ସହଜ ସ୍ୱଚ୍ଛନ୍ଦ ଭାବରେ ସମାଜ ଆଗରେ ପ୍ରକାଶ କରିବାକୁ ନ ଦେଇ ନିଜ ଭିତରେ ଗୋପନ ରଖିବାକୁ ଚେଷ୍ଟା କରିଛି । ଏଇ ପରିପ୍ରେକ୍ଷୀରେ ଗଳ୍ପ- ‘ମାଙ୍କଡ ଦିଆଶି’ ଅନୁଭବ କରାଯାଇଛି ଯେ ମାନବର ଚେତନା ମନର ସାମଗ୍ରିକ ରୂପାୟନ କେବଳ  ନୁହେଁ, ଚେତନ ମନର ବାହାରେ ଅବଚେତନ ମନର ଗୋଟିଏ ଅବସ୍ଥା ରହିଛି, ଯାହାକୁ ଅସ୍ୱୀକାର କରାଯାଇପାରେନା। ଲଡ୍ଡା ମିଆଁର ବିବି ଜୟତୁନ ଚରିତ୍ରର ଭିନ୍ନଭିନ୍ନ ମାନସିକତା ଏହି ତତ୍ତ୍ୱ ଅନୁସାରୀ ହୋଇଛି ବୋଲି ସ୍ୱୀକାର

କରାଯାଇପାରେ । ଉଭୟ ପଶୁ ଓ ମଣିଷର ଅବଚେତନ ମନରେ ପ୍ରେମ, ଈର୍ଷା ଓ ପ୍ରତାରଣାର କ୍ରିୟା ପ୍ରତିକ୍ରିୟା ଗଳ୍ପଟିରେ ବେଶ୍ ପ୍ରଭାବ ବିସ୍ତାର କରିଛି। ଗୋଟିଏ ପଶୁ ସଙ୍ଗେ ମଣିଷର ପ୍ରତିଯୋଗିତା ତଥା ପ୍ରତିଦ୍ୱନ୍ଦିତା ଅନ୍ତ ଘଟିଛି ଏକ ଅଭାବିତ ପ୍ରତାରଣାରେ, ଯାହା ଓଡିଆ ଗଳ୍ପ ପରଂପରାରେ ବିରଳ କଥାବସ୍ତୁ ।

ସାଧାରଣତଃ ମଣିଷ ଦୁଇଟି ସ୍ତରରେ ବଞ୍ଚିରହିଥାଏ । ଗୋଟିଏ ଚେତନ ଅନ୍ୟଟି ଅବଚେତନ ଅଥବା ଗୋଟିଏ କ୍ରିୟା ଏବଂ ଅନ୍ୟଟି ବିଚାର । ମଣିଷର କ୍ରିୟା ପ୍ରକ୍ରିୟାରେ ବାହ୍ୟତଃ ଗୋଟିଏ ବିଷୟ ସୂଚିତ ହେଲେ ମଧ ତାହାର ଅର୍ନ୍ତରାଜ୍ୟରେ ଅନ୍ୟ ଏକ ସ୍ୱରୂପ ପ୍ରଚ୍ଛନ୍ନ ରହିଥାଏ । ମନ ଜଗତର ଏହି ଚିନ୍ତା, କଳ୍ପନା, *ଆକାଂକ୍ଷା*, ଅଭୀପ୍ସା, କ୍ରୋଧ, ବିଫଳତା, ସ୍ମୃତି ଅନେକ ସମୟରେ ଅସାଧାରଣ, ଅସ୍ପଷ୍ଟ ଏବଂ ଅପ୍ରତ୍ୟାଶିତ । କ୍ରିୟା-ପ୍ରକ୍ରିୟା ମାଧମରେ ସୂଚିତ ବ୍ୟକ୍ତିତ୍ୱ ସହିତ ଅବଚେତନ ମନର ସ୍ୱରୂପକୁ ମିଶାଇଲେ ମଣିଷର ଯେଉଁ ଭାବସତ୍ତାଟି ପ୍ରତିଭାତ ହୁଏ ତାହା ଅନେକ ସମୟରେ ଏକ ଅକଳ୍ପନୀୟ ପରିଣତି ପାଖରେ ପହଁଞ୍ଚାଇ ଦିଏ । ଯାହାର ପ୍ରକୃଷ୍ଟ ଉଦାହରଣ ଭାବେ ଉକ୍ତ ଗଳ୍ପକୁ ଗ୍ରହଣ କରାଯାଇପାରେ । ତେବେ ଆଲୋଚ୍ୟ ଗଳ୍ପରେ ମଣିଷର ମନପରି ପଶୁମନକୁ ମଧ ସୂକ୍ଷ୍ମଭାବରେ ବିଶ୍ଳେଷଣ କରାଯାଇଛି।

ମାଙ୍କଡ଼ ଦିଆଶିକୁ ଧରି ଗାଁ ଗାଁ ବୁଲୁଥିବା ଲତ୍ତାମିଆଁ ଦିନ ଦିନ ଘରଠାରୁ ଦୂରରେ ରହିବାକୁ ବାଧ ହୁଏ । ତେଣୁ ପତ୍ନୀ ନୁହେଁ ବରଂ ଲତ୍ତାମିଆଁର ପ୍ରକୃତ ସୁଖଦୁଃଖର ସାଥୀ ପାଲୋଟିଯାଏ ମାଙ୍କଡ଼ଟି । ଅନ୍ୟପକ୍ଷରେ ମାସେ ପନ୍ଦରଦନେ ଥରଟିଏ ଘରକୁ ଫେରି ତାର ବାଟ ଚାହିଁ ବସିଥିବା ବିବି ଜୟତୁନ ସହିତ ଭେଟହୁଏ। ବିରହ ବିଷାଦରେ ଜୀବନ ବଞ୍ଚୁଥିବା ସ୍ତ୍ରୀ ପାଇଁ ଗୋଟେ ଶ୍ଳେଷଭରା ବକ୍ତବ୍ୟ ରଖନ୍ତି ଗାଳ୍ପିକ-' ମାତ୍ର ଘରବାହୁଡା ସେଇ ଦିନେ କି ଦୁଇଦିନ ବିବି ପାଇଁ ଢ଼େର । ମିଆଁ ତ ଫେରୁଛି, ହଜିଯାଉନାହିଁ କୁଆଡେ ।' ଏତିକି ତା ଜୀବନ ପାଇଁ ସାନ୍ତ୍ୱନା । ସେଇ ଥରକ ସେଇ ଦିନେ, କି ଖୁବ୍ ବେଶୀ ଦୁଇଦିନର ଦେଖା, କେଜାଣି କେତେ କାଳର ଛଡ଼ାଛଡ଼ା ହେବାର ଦୁଃଖକୁ ହୁଏତ ପୋଛି ପକଉଥିବ ତ ପୁଣି ଆଉ କେତେ ଅସୁମାରି ଦିନର ବିରହ ବେଦନା ସହିବା ପାଇଁ ପ୍ରସ୍ତୁତ କରି ନେଉଥିବ । କିନ୍ତୁ, ଲତ୍ତାମିଆଁର ଜୀବନ ସହିତ ଅବିଚ୍ଛିନ୍ନ ସଂପର୍କ ଯୋଡି ହୋଇଯାଏ ମାଙ୍କଡ଼ ଦିଆଶିର । ତେଣୁ, ବିବିର ମନ ଯେତିକି ଦିଶେ ତହୁଁ ଅଧିକ ଅଦୃଶ୍ୟ ହୋଇରହେ ଏବଂ ମୁଖ୍ୟ ଚରିତ୍ରଭାବେ ଅଧିକ ମାଙ୍କଡ ଚରିତ୍ରଟି ପାଠକ ସମ୍ମୁଖକୁ ଆସିଥାଏ । ସେହି ପଶୁ ଚରିତ୍ର ମାଧମରେ ହିଁ ପ୍ରକାଶିତ ହୁଅନ୍ତି ଅନ୍ୟ ଦୁଇଟି ପୁରୁଷ ଓ ନାରୀ ଚରିତ୍ର ।

ଗଳ୍ପଟିରେ ନାରୀଚରିତ୍ରଟିର ମନର ଅନ୍ଧାରିଆ କୋଠରୀରେ ପ୍ରବେଶ କରି ପ୍ରତ୍ୟେକ କୋଣ ଅନୁକୋଣକୁ ଅନୁସନ୍ଧାନ କରି ତାକୁ ପରିବେଷଣ କରିବା ଅପେକ୍ଷା ବେଶୀଭାବେ ଦେଖାଇ ଦିଆଯାଇଛି ପଶୁମନର ଭାବଭାବାନ୍ତରକୁ । ସେହି ପଶୁହିଁ ପରଖି ଦେଖିଛି ସେହି ମଣିଷ ଦୁହିଁଙ୍କୁ । ଏକ ଅବଶ୍ୟମ୍ଭାବୀ ପରିସ୍ଥିତିରେ ସେମାନଙ୍କ ଦାମ୍ପତ୍ୟର *ଶୂନ୍ୟସ୍ଥାନରେ* ନିଜର ସ୍ଥାନଟିଏ ଖୋଜିବାକୁ ଚେଷ୍ଟା କରିଛି। ଏହା ହିଁ ଗଳ୍ପଟିର ବୈଶିଷ୍ଟ୍ୟ । ମଣିଷପରି ପଶୁ ମନର ଆବେଗ ଓ ଆକାଂକ୍ଷାର ଏକ ଜଟିଳ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ହୋଇଛି। ମଣିଷମନର ଆଇନାରେ ପଶୁ ଚରିତ୍ରଟି ଦୃଶ୍ୟମାନ ନହୋଇ ପଶୁ ଚରତ୍ରଟିର ବିଚାର ବୋଧରେ ଲତ୍ତାମିଆଁ ଓ ଜୟତୁନ ଚରିତ୍ର ହୋଇଛି ଗତିଶୀଳ । ଲତ୍ତାମିଆଁ ଘରକୁ ଫେରେ, ଝୁଲିଟି ଝୁଲୁଥାଏ କାଖତଳେ – ବାରମିଶା ପଞ୍ଚୁବର୍ଣ୍ଣୀ ଚାଉଳରେ ଭରା, ଅଣ୍ଟିରେ ଭିଡ଼ିଥାଏ ଗାଞ୍ଜିଆଟାଏ, ତା'ରି ପାଖରେ ମାସେ ପନ୍ଦର ଦିନର ରୋଜଗାର ହିସାବ। ନିତି ନିତି ସେ ଯେତେ ଚାଉଳ ପାଏ, ବାଟରେ ହାଟରେ ବିକିଦେଇ ତାକୁ କଞ୍ଚା ପଇସା କରେ । ଚାଉଳ ବିକା ଆଉ ବକସିସ୍ ସିଧା ଦେଖେ ଗାଞ୍ଜିଆ ମୁହଁକୁ। ଖୁଚୁରା ପଇସା ଆଣି ସୁଉକି ଟଙ୍କାର ଆକାର ଧରେ ସେଇ ଗାଞ୍ଜିଆ ଭିତରେ । ଏହିପରି ମାସେ ପନ୍ଦର ଦିନର ରୋଜଗାର ଧରି ମିଆଁ ଘରକୁ ଫେରେ ଆଗ୍ରହରେ। ମାଙ୍କଡ଼ଟାକୁ ଖୁଣ୍ଟରେ ଦେଇ ମିଆଁ ଯାଇ ଚାଉଳ ପଇସା ଯାହା ଆଣିଥାଏ ସବୁତକ ଅଜାଡ଼ି ଦିଏ ଜୟତୁନ୍ ଆଗରେ। ମିଆଁକୁ ଦେଖି ଜୟତୁନ ଏଡ଼େ ଏଡ଼େ ଆଖିରେ ଚାହେଁ। କଥାକାର ମହାପାତ୍ର ସେହି ନାରୀଟିର ଚାହାଣୀକୁ ଖୁବ ଚମତ୍କାରଭାବେ ପରିଚୟ କରାନ୍ତି ପାଠକଙ୍କ ସହିତ-ଲତ୍ତାର ପୌରୁଷକୁ ପସନ୍ଦ କରିବା ପାଇଁ ଜୟତୁନର ଆଖି ଦୁଇଟା ଯେମିତି ଭାରି ଛୋଟ ଅସମର୍ଥ। ପୁନଶ୍ଚ ଜୟତୁନର ଚରିତ୍ର ଚାହାଣି ଆଉ ଦୁଇଟି ଆଖିରେ ବିଶ୍ଳେଷିତ ହୋଇ ପାଠକୀୟ ବିଚାରକୁ ଆସେ । ସିଏ ଲତ୍ତା ମିଆଁର ସହଚର, ଜୟତୁନ୍‌ର ପ୍ରତିଦ୍ୱନ୍ଦୀ-ମାଙ୍କଡ ଦିଆଶି । ମଣିଷର ପ୍ରବୃତ୍ତି ଓ ଚିତ୍ତବୃତ୍ତିର ବିଭିନ୍ନ ହେତୁ, ଅସଂଗତିର ସ୍ୱରୂପ ନିର୍ଦ୍ଧାରଣ ଏବଂ ବ୍ୟକ୍ତିର ଆଚରଣକୁ, ଅର୍ଥପୂର୍ଣ୍ଣ, ସଂହତ ଓ ସମ୍ବେଦନଶୀଳ ମୋଡ଼ ଦେବାରେ ମନସ୍ତାତ୍ତ୍ୱିକ ପ୍ରକ୍ରିୟା ଯେପରି ଏକାନ୍ତ ଗୁରୁତ୍ୱପୂର୍ଣ୍ଣ ବିବେଚିତ ହୋଇଥାଏ। ସେହିପରି ମାଙ୍କଡ ଦିଆଶି -ପଶୁ ଚରିତ୍ରଟିର ଚିତ୍ତବୃତ୍ତିର ବହୁଧା ରୂପ ପ୍ରତିଫଳିତ ହୋଇଛି ଗଳ୍ପଟିରେ ।

ଫ୍ରଏଡ଼ଙ୍କ ବିଚାରଧାରା ଅନୁଯାୟୀ ପ୍ରତ୍ୟେକ ମଣିଷର ଅନ୍ତର୍ଜଗତରେ ପ୍ରେମ ଓ ମୃତ୍ୟୁ ଭିତରେ, ଜୀବନ ପ୍ରବୃତ୍ତି (Erotic Instinct) ଏବଂ ମରଣ ପ୍ରବୃତ୍ତି (Death Instinct) ଭିତରେ ଅହରହ ସଂଘର୍ଷ ଚାଲିଛି । ମଣିଷ ନିଜକୁ ଭଲପାଏ ଏବଂ ବଞ୍ôଚରହିବାକୁ ଚାହେଁ । ନିଜ ଚତୁଃପାଶ୍ୱର୍ରେ ଥିବା ଦୃଶ୍ୟମାନ

ପୃଥିବୀକୁ ମଧ୍ୟ ସେ ଭଲପାଇ ଶିଖେ । ଅପର ପକ୍ଷରେ ଆତ୍ମହତ୍ୟା କରିବାପାଇଁ, ନିଜକୁ ନିଃଶେଷ କରିଦେବା ପାଇଁ ଓ ନିଜ ଚତୁଃପାଶ୍ୱର୍ରେ ଯାହାକିଛି ବିଦ୍ୟମାନ, ତାକୁ ହତାଦାରକରିଦେବା ପାଇଁ ମଧ୍ୟ ମଣିଷ ଭିତରେ ଏକ ପ୍ରବୃତ୍ତି ପ୍ରେରଣା ଦେଉଛି । ଉଭୟ ପ୍ରବୃତ୍ତି ଗଢ଼ିବାର ଏବଂ ଭାଙ୍ଗିବାର ଉଭୟେ ମଣିଷର ସହଜାତ । ପ୍ରତ୍ୟେକଟି ମଣିଷ ଭିତରେ ଏହି ଉଭୟ ପ୍ରକୃତି ଯୁଗପତ୍ କାର୍ଯ୍ୟ କରୁଅଛି। ଗଳ୍ପଟିରେ ମଣିଷ ଓ ପଶୁ ଚରିତ୍ର ଯେପରି ବର୍ଣ୍ଣନା କରାଯାଇଛି, ସେଥିରୁ ସେ ଉଭୟଙ୍କ କ୍ଷେତ୍ରରେ ଅନ୍ତର୍ଜଗତରେ ଯୁଗପତ୍ କ୍ରିୟାଶୀଳ ହେଉଥିବା ଏହି ପ୍ରଚ୍ଛନ୍ନ ପ୍ରବୃତ୍ତି ଖୁବ୍ ସ୍ପଷ୍ଟ ଭାବେ ପ୍ରକଟିତ ହୋଇଛି । ଲଭାମିଆଁ ବିରହର ଲମ୍ବା ରାସ୍ତାର କ୍ଳାନ୍ତି ଭୁଲିଯାଏ । ଦୀର୍ଘଦିନ ପ୍ରବାସରେ ରହି ଆକୁଳରେ, ଆନନ୍ଦରେ ପୁଣି ଉତ୍ସାହରେ ଘରମୁହାଁ ହୁଏ । ଜୀବନ ପ୍ରବୃତ୍ତି (Erotic Instinct) ବିଭୋର କରେ। ମୁନୀବର ଖୁସିରେ ଆପଣାକୁ ଭାଗିଦାର କରିବାକୁ, କେତେ ବାଟଯାଏ ପଛେ ପଛେ ଜଞ୍ଜିରରେ ବନ୍ଧା ହୋଇଥିବା ଅବସ୍ଥାରେ ମାଙ୍କଡଟି ଗୋଡ଼େଇ ଗୋଡ଼େଇ ଆସି ଘରପାଖ ହେବାକ୍ଷଣି ମିଆଁର ପିଠି ଉପରକୁ ଡେଇଁପଡେ । ଲୁହାର ଜଞ୍ଜିରଟା ଝମ୍‌ଝମ୍ ବାଜିଉଠେ। ମାଙ୍କଡ଼ ଦିଆଶି ତା'ର ଉପସ୍ଥିତି ଜଣାଇଦିଏ । ମିଆଁର ବିବି ଚମକି ଉଠେ ସେ ଶବ୍ଦରେ, ଆଖି ଉଠାଇ ଦେଖେ ମିଆଁକୁ । ନିରୀହ ପଶୁଟିର ଉପସ୍ଥିତିକୁ ଭୁଲିଯାଏ ଅଥବା ସପତ୍ନୀକ ଅସହିଷ୍ଣୁତାରେ ତାକୁ ଏଡ଼େଇ ଯାଏ ।

ଅବଚେତନ ମନର ଅନ୍ଧାର କୋଠରୀ କିଛି ଭାଙ୍ଗି ଯିବାର, ଧ୍ୱଂସ ହେବାର ପ୍ରବଣତା ପ୍ରଖର ହୁଏ ଉଭୟ ପଶୁ ଓ ମଣିଷର। ମାଲିକାଣୀର ଈର୍ଷା, ଅନାଦରକୁ ଦିହମନକୁ ନନେଇ ମାଙ୍କଡ଼ଟା ଚିଁ ଚିଁ ହୋଇ ମିଆଁ ପିଠିରୁ ବିବି ଉପରକୁ କୁଦି ପଡେ । 'ଡାକ୍ନିଖିଆ ବନ୍ଦର' ବୋଲି ବିବି ଖିଙ୍କାରି ହୋଇ ତାକୁ ଛାଟିଦିଏ ଉପରୁ। ପୋଷା ପୁଷିଟି ପରି ନିରୀହ ମାଙ୍କଡଟି ବିବି ଗୋଡରେ ଯାଇ ନେସି ହୁଏ ଯେମିତି - ସୀତାଙ୍କ ପାଖରେ ହନୁମନ୍ତ । ହେଲେ ଦେବୀ ସୀତାଙ୍କ ପରି ଉଦାର ହୃଦୟ କ'ଣ ଜୟତୁନ୍? ଲଭା ମିଆଁର ଜୀବନ ଜୀବିକା ସହିତ ଅବିଛିନ୍ନ ମାଙ୍କଡଟିକୁ ଗୋଟାଏ ସାମାନ୍ୟ ପଶୁ ବ୍ୟତୀତ ଆଉ ଅଧିକ କିଛି ଭାବି ପାରେନି ଜୟତୁନ୍ ।

ଫ୍ରଏଡୀୟ ଭାଷାରେ କହିଲେ ଉଭୟ ଚରିତ୍ରରେ ଯୌନ କାମନା (Libido)ର ଏକ ଅପ୍ରକାଶିତ ଅବସୋସ କ୍ରିୟାଶୀଳ ହୋଇଉଠେ । ଉଭୟ ଅସହାୟ ଓ ଅତୃପ୍ତତାବୋଧରେ ବିଚଳିତ ହୋଇଯାଆନ୍ତି । ମାଙ୍କଡ଼ଟି ଖୁଣ୍ଟ ମୂଳରେ ଥାଇ ମୁଣ୍ଡ କୁଣ୍ଡେଇ ହେଉଥାଏ। ମୁଣ୍ଡରେ ଉକୁଣି । ତା' ପୌରୁଷରେ ଆଘାତ ଲାଗେ । ସେ ସେହି ଉକୁଣିରୁ ଗୋଟିଏ ଦୁଇଟା ଖୁବ୍ ଜୋରରେ ଟାଣିଟାଣି ପାଟିକି ପକେଇଦିଏ । ସେଇ ତା'ର ପୌରୁଷ, ସେତିକିରେ ତା'ର ପୌରୁଷର ପରାକାଷ୍ଠା ପ୍ରତିପାଦିତ ହୋଇଯାଏ । ତା'ଛଡ଼ା ହନୁପାଟି ଭିତରେ କ'ଣ ଜମାକରି ଗାଲଦିଟାକୁ ଫୁଲେଇଥାଏ । ତାକୁଇ ଦେଖାଇ ଦେଇ ସେ ମନେ ମନେ ଆପଣା ପୌରୁଷକୁ ଆପେ ପ୍ରଶଂସା କରୁଥାଏ । ତା ପୌରୁଷକୁ ପସନ୍ଦ କରିବାପାଇଁ ବୁଝିବା ପାଇଁ କେହି ନଥାନ୍ତି । ତା'ପୌରୁଷରେ କାହାରି ଛୋଟ ଛୋଟ ଆଖି ଏଡେ ଏଡେ ବଡ଼ ହୋଇଯାଏ ନାହିଁ । ମାଙ୍କଡ଼ନଚାର ରୋଜଗାର ଭିତରେ ମାଙ୍କଡ଼ର କେତେଭାଗ ରହିଛି ସେ କଥା ଯେ ମାଙ୍କଡ଼ନଚାର ପୌରୁଷରେ ଅନ୍ଧ, ଲଭାମିଆଁର ଆପଣା ଘରଣୀ ଜୟତୁନ ବିବିର ଆଖି କାହିଁ ଯେ ଦେଖିବ – ବୁଝିବ? ମାଙ୍କଡର ମନର ଦର୍ପଣରେ ପ୍ରତିଫଳିତ ହୁଏ ଜୟତୁନର ଚରିତ୍ର । ଜୟତୁନର ଈର୍ଷା, ଅବହେଳା, ଅନାଦର, ଅସହିଷ୍ଣୁତାରେ ପଶୁ ଚରିତ୍ରଟି ଆହୁରି ପାଠକ ପାଖକୁ ନିକଟେଇ ଆସେ । ପ୍ରତିସ୍ପର୍ଦ୍ଧାରେ ପ୍ରକାଶିତ ହୁଏ ତାର ଅବଚେତନର ପରାହତ ପ୍ରତିକ୍ରିୟା ।

ଗଳ୍ପଟିରେ ଲଭାମିଆଁ ଦୁଇ ପ୍ରତିଦ୍ୱନ୍ଦୀ ମଧ୍ୟରେ ପେଷିହୋଇ ନିଜର ସମସ୍ତ ପ୍ରତିକ୍ରିୟାକୁ ଅନୁଚ୍ଚାରିତ କରିରଖିଛି। 'ସାହିତ୍ୟ ଉପରେ ମନସ୍ତତ୍ତ୍ୱର ଆକ୍ରମଣ' ଶୀର୍ଷକ ଆଲୋଚନାରେ C.E.M. Joad ଉଲ୍ଲେଖ କରିଛନ୍ତି –"ବ୍ୟକ୍ତିର ବ୍ୟକ୍ତିତ୍ୱ ବୋଲି କିଛି ନାହିଁ । ଜଣେ ବ୍ୟକ୍ତି ହେଉଛି କେତେକ ଭାସମାନ ବ୍ୟକ୍ତିତ୍ୱର ସମାହାର । ଏଗୁଡ଼ିକ ପ୍ରତ୍ୟେକ ଗୋଟିଏ ଗୋଟିଏ ମାନସିକ ମୁହୂର୍ତ୍ତରେ ତା'ଉପରେ ସବାର ହୁଅନ୍ତି ।" ମଣିଷର ପ୍ରକୃତ ସ୍ୱରୂପ ଜାଣିବା ପାଇଁ ତାହାର ବହିରାବଣ ଯେତିକି ଉପାଦେୟ ନୁହେଁ ତତ୍ପେକ୍ଷା ଅସ୍ପଷ୍ଟ ଛାୟାର ଅନୁସରଣ କରି ଅନ୍ତଃପ୍ରକୃତିକୁ ଦେଖି ତା'ର ଗତି ନିର୍ଣ୍ଣୟ କରି ମଣିଷର ପୂର୍ଣ୍ଣ ପରିଚୟ ଲାଭ କରିବା ସେତିକି ସହଜ ଓ ମହତ୍ତ୍ୱପୂର୍ଣ୍ଣ । କିନ୍ତୁ ଲଭାମିଆଁର ସମଗ୍ର ବ୍ୟକ୍ତିତ୍ୱ ମାଙ୍କଡଦିଆଶି ଦ୍ୱାରା ସତେଅବା ନିୟନ୍ତ୍ରିତ ହୋଇଛି। ଯଦିଓ ଜୟତୁନର ସକଳ ବିପରୀତ ବ୍ୟବହାରରେ ସଂକ୍ରମିତ ହୋଇଯାଏ ମାଙ୍କଡ଼ ଦିଆଶି । ତା'ର ହକ୍ ପାଇଁ ହାହାକାର କରିଉଠେ ମନ । ତଥାପି ଏପଟସେପଟ ଚିମ୍ବାରି ଆନନ୍ଦ ଖୋଜୁଥାଏ। ପରିବାରର ଜଣେ ବୋଲି ଜାହିର କରିବାକୁ ବ୍ୟାକୁଳ ହେଉଥାଏ। ବାହାରେ ବୁଲି ବୁଲି ଘରେ ଆସି ପଶିବାର ଆନନ୍ଦ, ଗୋଟାଏ ବନ୍ଧନରୁ ଆଉ ଗୋଟିଏ କଠିନ ବନ୍ଧନ ଭିତରେ ପଶିବାକୁ ବି ଭଲ ବୋଲି ଭାବିବାକୁ ମନକୁ ବୁଝାଉଥାଏ। ବନ୍ଧନକୁ ବନ୍ଧନ ବୋଲି ନ ଭାବିବା ପାଇଁ ମନଟାକୁ ବାଧ୍ୟ କରି ବଧିଆ କରିନିଏ । ନିଜ ଅନିଚ୍ଛାରେ ଆନନ୍ଦ ଆଣି ଲଦିବାକୁ ଚେଷ୍ଟା ଚଳାଉଥାଏ । ମଣିଷର ସ୍ୱାର୍ଥପରତାକୁ ସହ୍ୟ କରିବା ପାଇଁ ନିଜକୁ ତିଆରୁ ଥାଏ ।

ମାଙ୍କଡ଼ ଦିଆଶିଟି ଜାଣେ, ମଣିଷର ପଶୁପ୍ରୀତି କେବଳ କାର୍ଯ୍ୟ ଘେନା । ପଶୁର ପ୍ରାଣକୁ ବୁଝିବା ପାଇଁ ମଣିଷ ମନରେ ଆଦୌ ମମତା ନଥାଏ । ମିଆଁ ବିବି ଦିହେଁ ଖାଇବସନ୍ତି । ମାଙ୍କଡ କଥା

ମନେ ନଥାଏ କାହାରି । ଖାଇପିଇ ହାତ ଧୋଇବା ବେଳକୁ ମିଆଁର ମନେ ପଡ଼ିଯାଏ 'ବନ୍ଦର' । ବିବି ଚିଡ଼ି ଉଠେ । ପ୍ରକୃତରେ ସେ ଚିଡେ ଆପଣା ଉପରେ ମନେ ପଡ଼େ ନାହିଁ ବୋଲି । କିନ୍ତୁ ସେ ବିରକ୍ତିର ମାଡ ସହେ-ବିଚରା ହନୁ । ଯେମିତି ତା'ର ମାଗିବାର ଶକ୍ତି ଅଛି, ସେ ମାଗୁନାହିଁ କେବଳ ଜୟତୁନକୁ ଲଭାମିଆଁଠାରୁ ଗାଳି ଦିପଦ ଶୁଣାଇବାକୁ । ହନୁର ଦୋଷ ଏତିକି । ପଶୁ ହେଲେବି ସେ ଏତିକି ବୁଝିଯାଏ ଅଥବା ବୁଝିବା ପାଇଁ ବାଧ ହୁଏ ।

ଫ୍ରଏଡଙ୍କର (ଓୟ) 'ଇଡ୍' ଓ 'ଇଗୋ' ଭିତରେ ସମ୍ପର୍କର ଛାଇ-ଆଲୁଅ ଖେଳ ଯୁଗପତ୍ ଘଟିଚାଲିଛି । ମଣିଷର ଅବଚେତନ ମନରେ ବସା ବାନ୍ଧିଥିବା ତା'ର ପ୍ରବୃତ୍ତିପୁଞ୍ଜ ଉପରେ ପ୍ରଭୁତ୍ୱ ବିସ୍ତାର କରି ତାକୁ ସୁନିୟନ୍ତ୍ରିତ କରିବାର ଶକ୍ତି ତା'ର ଚେତନ ଅହଂସତ୍ତା ହାତରେ ରହିଛି । ମାତ୍ର ପ୍ରବୃତ୍ତି କବଳରୁ ପୁରାପୁରି ମୁକ୍ତହେବା ସମ୍ଭବ ନୁହେଁ, କେବଳ ତାକୁ ନିୟନ୍ତ୍ରଣ କରାଯାଇପାରେ ବା ତା'ର ଗତିପଥ ବଦଳାଇ ଦିଆଯାଇପାରେ। ଧ୍ୱଂସ ଅଥବା ନାନା ବିପରୀତ ପ୍ରବୃତ୍ତିକୁ ନିୟନ୍ତ୍ରିତ କରିବା ପାଇଁ ଜୀବନ-ପ୍ରବୃତ୍ତିକୁ ସକ୍ରିୟ କରୁଥିବା ପରିବେଶ ସୃଷ୍ଟି ହେଲେ ପରିସ୍ଥିତି ହୁଏତ ବଦଳି ଯାଇପାରେ। ଜୟତୁନର କ୍ଷେତ୍ରରେ ସମସ୍ତ ବିପରୀତ କ୍ରିୟା ପ୍ରତିକ୍ରିୟା ସ୍ୱଭାବସିଦ୍ଧ ଇର୍ଷାରେ ଅନମନୀୟ ହୋଇରହେ। ଭିତରେ ଭିତରେ ଲଭାର ସୁଖସ୍ୱପ୍ନକୁ ଭାଙ୍ଗିରୁଜି ଦେବାର ଇଛାରେ ସେ ହୁଏତ ସାଲିସ କରିବାର ଅଭିନୟ କରିଚାଲେ ।

ଧ୍ୱଂସର ପ୍ରବୃତ୍ତି ଖୁବ୍ ବଳବାନ୍ । ସେ କ୍ଷେତ୍ରରେ ତା'ର ଗତିପଥ ବଦଳାଇବାକୁ ଯାହାକିଛି ଅସତ୍, ଅସୁନ୍ଦର ଓ ଅଶିବ ତା'ର ଧ୍ୱଂସ ପାଇଁ ବିନିଯୋଗ କରିଚାଲେ ମଣିଷ। ଜୟତୁନ, ଲଭାମିଆଁ ଏପରିକି ହନୁ ଭିତରେ ବି ଭାଙ୍ଗିଯିବାର ଅବସ୍ଥା ସୃଷ୍ଟିହୁଏ ।

ମାନସିକ ସଂକଟ ଓ ବିପରୀତ ଚିନ୍ତାର ସଂଘର୍ଷ ଅନିବାର୍ଯ୍ୟ ହୋଇପଡ଼ିଛି । ଏ ସଂଘର୍ଷ ପୁଣି ମୁଖ୍ୟତଃ ଜୀବନ ଜୀବିକା ଏବଂ ସୁପ୍ତ ଯୌନଚେତନାର ଉଦ୍ଦାମ ପ୍ରବାହକୁ କେନ୍ଦ୍ର କରି ଗଢ଼ିଉଠିଛି। ଲଭା ମିଆଁ ପେଟପାଟଣାର ବେଉସା ଭିତରେ ଦେହମନର ବାର୍ଦ୍ଧକ୍ୟ ଆଡକୁ ଗତି କରୁଥିବା ବେଳେ ଜୟତୁନ୍‌ର ଯୌବନ ଅତୁଟ ନିଖୁଣ ରହିଛି । ବାହ୍ୟ ଆଚରଣ ମଧ୍ୟରେ କୌଣସି ଆନ୍ତରିକ ସମ୍ପର୍କ ସୂତ୍ର ନ ଦେଖି ନାରୀଟି ଏକନିଷ୍ଠ ଭାବେ ଅନ୍ତର୍ମୁଖୀ ହେବାକୁ ବାଧ ହୋଇଛି । ବ୍ୟକ୍ତି ମଣିଷର ବାହ୍ୟ ଆଚରଣ ଓ ଭିତିରିମନ ଭିତରେ ଏକ ଅସ୍ୱସ୍ତିକର ପାର୍ଥକ୍ୟ ହିଁ ଗଳ୍ପର ପରିସମାପ୍ତିକୁ ଶୂନ୍ୟ ହାହାକାରରେ ଭରି ଦେଇଛି।

କେହି କାହାର ବ୍ୟାବହାରିକ ଆଚରଣକୁ ନିର୍ବିବାଦରେ ଗ୍ରହଣ କରି ପାରିନାହାଁନ୍ତି । ଫଳରେ ଜୀବନର ସ୍ୱାଦ ପଶୁ ଠାରୁ ମଣିଷ ସମସ୍ତେ ହରେଇବସିଛନ୍ତି । ପ୍ରତ୍ୟେକଙ୍କର ଏହି ବିଷାଦବୋଧ ବେଶ ସମ୍ବେଦନଶୀଳ ଭାବେ ଗଳ୍ପଟିରେ ପରିବେଷଣ ହୋଇଛି । ହନୁ ମନର ଦର୍ପଣରେ ପ୍ରତିବିମ୍ବିତ ହୋଇଛି ଦୁଇଟି ଚରିତ୍ର ଜଣେ ଲଭାମିଆଁ, ତା'ର ମୁନୀବ, ଅନ୍ୟ ଜଣେ ତା'ର ବିବି । ଦୁଇଜଣକୁ ନିଜର ବିଚାରରେ ତଉଲିଛି ମାଙ୍କଡ଼ ଦିଆଶି । ସତେଅବା ମଣିଷଠାରୁ ତା'ର ବିଚାର ବିଶ୍ଳେଷଣ ଓ ଅନୁଭବର ପରିଭାଷା ଅଧିକ ଶାଣିତ ଓ ସ୍ୱଷ୍ଟ । ଅଥଚ ଜଞ୍ଜିରରେ ବନ୍ଧା ତା'ର ଜୀବନ ନିରୀହ ନିରୁପାୟ । ତୀବ୍ର ପ୍ରତିକ୍ରିୟା ମନ ଭିତରେ ଥାଇ ବି ପଶୁବୋଲି ପ୍ରତିବାଦହୀନ ସେ । ଅନ୍ୟ ପକ୍ଷରେ ଏଇ ପଶୁଟି ପ୍ରତି ଜୟତୁନର ପ୍ରବଳ ଇର୍ଷା, ପ୍ରଚଣ୍ଡ ହିଂସା । ମାଙ୍କଡ଼ ପ୍ରତି ସ୍ୱାମୀର ସାମାନ୍ୟତମ ଭଲପାଇବା ତାକୁ ଅସହ୍ୟ ହୁଏ। ଠିକ୍ ସେହିପରି ଅନୁଭବ ମଧ୍ୟ ମାଙ୍କଡ଼ଟିର । ପଶୁ ମଣିଷର ଏହି ମାନସିକ 'କ୍ରିୟା-ପ୍ରତିକ୍ରିୟା ଏକାନ୍ତ ନିଆରା ଢ଼ଙ୍ଗରେ ହୋଇଛି ଉପସ୍ଥାପିତ । ପ୍ରତିବାଦ କରିପାରୁନଥିବା ମାଙ୍କଡର ମନ ପ୍ରବଳ ପ୍ରତିକ୍ରିୟାରେ ହୋଇଛି କ୍ଷୁବ୍ଧ। ଅନୁରୂପ ଭାବେ ଜୟତୁନ୍ ବି ତାକୁ ପଶୁଟିଏ ଭାବି ନୀରବ ରହି ଯାଏନି । ସଉତୁଣି ଭଳି ସହ୍ୟ କରି ପାରେନି ସ୍ୱାମୀର ଜୀବନ ଜୀବିକାର ସହଚର ପ୍ରତି ସାମାନ୍ୟ ଅନୁରାଗ ।ସତକୁ ସତ ହନୁର ଖାଇବା କଥାଟା ଭୁଲିଯାଇଥାଏ, ଅଥବା ଜାଣି ଶୁଣି ଏଡ଼େଇ ଯାଇଥାଏ କେଜାଣି; ସ୍ୱାମୀର କଥାରେ– 'ବିବି ଜୟତୁନର ହିଂସା ହୁଏ । ଦିନେ ଦୁଇଦିନେ ଥରୁଟେ ପଚାରିଲେ ବି ଜୟତୁନକୁ ଲାଗେ ଯେମିତି ଲଭାମିଆଁ ଦିନରେ ଦଶଥର ପଚାରୁଛି- 'ବନ୍ଦରଖାୟା ?' ଆଉ ଶହେଥର ପଚାରିଲେ ବି ତାକୁ ଲାଗେ ଲଭାମିଆଁ ଶରଧା କରି ଥରଟେ ବି ପଚାରୁ ନାହିଁ - ଜୟତୁନ୍ ତେଁ ଖା ଲୀ ?'ହନୁର ଅସୂୟା ବିଦ୍ୱେଷ କିଛି ଊଣା ହୁଏ ନାହିଁ । ହନୁର ବି ହିଂସା ହୁଏ ଜୟତୁନ୍ ଉପରେ । ରୋଜଗାର କରିବ ସେ, ଆଏସ୍ କରିବ ଜୟତୁନ ଘରେ ବସି । ଲଭାମିଆଁ ଯାବତ୍ ପୋଷାକ, ଯାବତ୍ ଗହଣା କିଣି ଆଣି ଜୟତୁନକୁ ଦେବ । ହନୁ ପାଇଁ କିଛି ନାହିଁ । ଖାଲି ନାଟ କଲାବେଳେ ପଇସା ରୋଜଗାର ବଖତରେ ରଙ୍ଗ ରଙ୍ଗର ପୋଷାକ ଦେବ ଆପେ ପିନ୍ଧିବାକୁ । ତା'ପରେ ପୁଣି କାଢି ପକେଇବାକୁ କହିବ । କିନ୍ତୁ ବିବିର କି ଭେକ ଦେଖିବ । ଖାଲି ସବୁବେଳେ କସ୍ତା, ପିଚାପାଢୀ ଶାଢ଼ୀ । ହରଘଡ଼ି ହାତରେ କାଚ ଚୁଡ଼ି ଝୁମ୍‌ଝୁମ୍ । ବେକରେ ହଂସୁଲି, ବାହୁରେ କାଙ୍ଗୁ, ହନୁର କାହିଁ-କ'ଣ? କିଛି ନା ! ପ୍ରତ୍ୟେକ ଚରିତ୍ରମଧ୍ୟରେ ଏହାର ଅନ୍ତଃ ସ୍ୱରୂପକୁ ଖୋଜି ଦେଖିବା ଗଳ୍ପଟିରେ ଏକାନ୍ତ ଭାବେ ଅପରିହାର୍ଯ୍ୟ ହୋଇପଡ଼ିଛି । ବ୍ୟକ୍ତିମନର ଅନାଲୋଚିତ ଅନ୍ତର୍ଲୋକକୁ ନିରେଖି ଦେଖିବାବେଳେ ଗାଳ୍ପିକ ଚରିତ୍ରମାନଙ୍କର ମନସ୍ତତ୍ତ୍ୱର ସୂକ୍ଷ୍ମ ବିଶ୍ଳେଷଣ କରି ବ୍ୟକ୍ତିସତ୍ତା ଓ ବ୍ୟକ୍ତି ମଣିଷର ଏପରିକି ପଶୁଟିର ରୂପାନ୍ତରକୁ ଦେଖାଇଛନ୍ତି ।

ସପତ୍ନୀର ଈର୍ଷା ଜୟତୁନ୍ ଆଉ ହନୁ ଦୁହିଁଙ୍କ ଭିତରେ ବଢି ବଢି ଚାଲେ । ମଝିରେ ମେରୀଖୁଣ୍ଟ ଲଭାମିଆଁ । କୋଉପଟକୁ ବି ପଲା

ଟିକିଏ ଭାରି ହୋଇଗଲେ ସତେଅବା ସଂସାରର ନଉକାଟି ଟଳମଳ ହେଇଯିବ । ତୋଫାନ୍ରେ ଓଲଟି ଯିବ ! ସେଥିପାଇଁ ନିର୍ବିକାର ମଙ୍ଗୁଆଳଟି ପରି ମଙ୍ଗ ସମ୍ଭାଳି ଧରିଥାଏ ମିଆଁ । ଜଣେ ନଉକା ହେଲେ ଆରଟି କାତ । ଦୁହେଁ ତ ନାଉରୀର ଜୀବନ, ଜୀବିକାର ଅବଲମ୍ବନ । ହେଲେ ନିଜେ ସନ୍ତୁଷ୍ଟ ରହିଲେ ବି ଦୁଇଟି ପ୍ରାଣୀ ଅସନ୍ତୋଷରେ କୁହୁଳିଥାନ୍ତି । ପାରସ୍ପରିକ ପ୍ରତିହିଂସା ପୁଣି ପ୍ରତିଯୋଗିତା । ଜୟତୁନ ମାନବୀ, ଲଲ୍ଲାମିଆଁର ପତ୍ନୀ । ତା'ର ସୌନ୍ଦର୍ଯ୍ୟ ମିଆଁର ଆଖିରେ ପ୍ରତିଫଳିତ ହୁଏ ତ; ହନୁର ମନରେ ନିଆଁ ଜଳେ । ଭଙ୍ଗା ଚେପା ପୁରୁଣା ରସଗିନାରେ ପିଇବାକୁ ମୁନ୍ଦାଏ ପାଣି ମିଳିଗଲେ, ଯେତେ ଶୋଷ ଲାଗୁଥାଉ ପଛେ ତହିଁରେ ହନୁ ଆପଣା ମୁହଁ ଦେଖେ । ପହିଲୁ ପହିଲୁ ସେ ଡରୁଥିଲା, ଠିକ୍ ଆପଣାକୁ ନୁହେଁ; ଆପଣା ପଶୁତ୍ୱକୁ । କିନ୍ତୁ ଏବେ ସେ ନିକୁଟି କରି ଚାହେଁ, କାନରେ ତା'ର କେଇଟା ଫାସିଆ ଝୁଲୁଚି । ନାକରେ ବି । ଏତକ ପାଇଁ ସେ ଜୟତୁନର ସମସରିସା ହୋଇ ପାରେ । କିନ୍ତୁ ଜୟତୁନର ଗହଣା ଘେନା ଆଉ ତା'ର ଫାସିଆ ପିନ୍ଧା ଭିତରେ ଆକାଶ ପାତାଳ ତଫାତ୍ । ଆପଣା ଆଉ ପର, ମଣିଷ ଆଉ ପଶୁ ଭିତରେ ଯେଉଁ ତଫାତ୍ ।

ଜୀବନର ବିବିଧ ବୈଚିତ୍ର୍ୟ ଓ ଅସଂଖ୍ୟ ଜଟିଳତା ମନସ୍ତତ୍ତ୍ୱର ସ୍ୱରୂପକୁ ଅଧିକ ପ୍ରାସଙ୍ଗିକ ଓ ସମୁଚିତ କରିଛି। ସାମାଜିକ ବହୁ କୃତ୍ରିମ ଆଭିମୁଖ୍ୟକୁ ଅବହେଳା କରି ଜୀବନ ଜିଜ୍ଞାସା ନିଜ ମନ ଭିତରେ ହିଁ ପ୍ରକୃତ ଜୀବନର ସ୍ୱରୂପକୁ ଖୋଜିବସିଛି । ମାତ୍ର, ଅସହିଷ୍ଣୁ ଚେତନାର ବିଷାଦଗ୍ରସ୍ତ ମଣିଷ ପାରମ୍ପରିକ ମୂଲ୍ୟବୋଧକୁ ଅସ୍ୱୀକାର କରିଛି। ଦାମ୍ପତ୍ୟର ବନ୍ଧନକୁ ହତାଦାର କରିଛି । ସାମାଜିକ ବନ୍ଧନରୁ ମୁକ୍ତି ଚାହିଁଛି ଜୟତୁନ । ବହୁ ସନ୍ଦେହ ଓ ଅବିଶ୍ୱାସ ମଧ୍ୟରେ ଥାଇ ସେ ସାମାଜିକ ଏବଂ ବିଶ୍ୱସ୍ତ ବୋଲି ଛଳନା କରି ବଞ୍ଚିରହିଥିଲା ବୋଲି ପରିଶେଷରେ ଜଣାଇଦେଇଛି । ଯୌବନକୁ ଖୁବ୍‌ବେଶୀ ସାଇତି ସଂପାତି ରଖିବାକୁ ଜୟତୁନ ଯେତିକି ହତାଦର କରେ ହନୁକୁ, ସେତିକି ନ୍ୟୁନ ଦୃଷ୍ଟିରେ ଦେଖେ ଲଲ୍ଲାମିଆଁ କୁ । ତା'ର ଅବଚେତନ ମନରେ ବି ଶ୍ରଦ୍ଧା ସମ୍ବେଦନା ନଥିଲା ମିଆଁ ପ୍ରତି । ମାଙ୍କଡ଼ ନଚାଳି ମଣିଷଟାକୁ ସେଇ ମାଙ୍କଡ଼ ସହିତ ତୁଳନା କରି ପରିହାସ କରେ । ଲଲ୍ଲାମିଆଁ ସୁନ୍ଦରୀ ବିବିକୁ ରାଗି ପାରେନି, କପଟ କ୍ରୋଧରେ ବେତ ଉଠାଏ । ହନୁକୁ ବେତ ଉଠାଇଲେ ସିଏ ନାଚିବାକୁ ବାଧ୍ୟ ହୁଏ, ଅଥଚ ବିବି ସେପରି କରେ ନାହିଁ । ମାଙ୍କଡ ମନକୁ ଏତିକି ତଫାତ୍ ବି ଭାରି କରିଦିଏ ।ଦିନେ ଫାସିଆ ପିନ୍ଧିବାକୁ ନେଇ ହନୁ ଭୋଗିଥିଲା ଅସହ୍ୟ ଯନ୍ତ୍ରଣା । ସେ ଯନ୍ତ୍ରଣା ଆଦୌ ଭୁଲିନାହିଁ ସିଏ । ଗୋଟିଏ ଫାସିଆ କାନଟାକୁ ଟାଣି ଟାଣି, କାନଟାକୁ ଦି'ଫାଳ କରି ଛିଡ଼ିପଡ଼ିଲାଣି । ଆଉ କେଇଟା କାନର କଣାକୁ ଓସାର କରି ଆଁ କରି ଚାହିଁଛନ୍ତି । ଆଜି ଆଉ ସେଠି ପରାସ ନାହିଁ । ପରାସ ଅଛି ମନ ଭିତରେ । ଦାଗ ଲାଗିଛି ଯାଇଁ ବଡ଼ ଗହୀରରେ । କିନ୍ତୁ କାହାର ପ୍ରଶଂସା ଟିକକ ପାଇଁ ସତେକ କଷ୍ଟକୁ ସହିଯାଇଛି? ଦେହର କଞ୍ଚା ମାଉଁସକୁ ହୀନାସ୍ତା କରି ଏତେ ହାନ୍ତି କରି କରି ଫୋଡ଼ି ପକେଇଛି । କିଏ ବୁଝିଛି କବେ କ'ଣ କଥା କହିପାରୁ ନଥିବା ଏଇ ପଶୁମାନଙ୍କ ମନ? ବୁଝିଛି କି ମଣିଷ? ବୁଝିଛି କି ଲଲ୍ଲାମିଆଁ? ନବୁଝିଲେ ନାଇଁ ଈର୍ଷା , ଘୃଣାରେ ଓ ଅବସାଦରେ ଜଳୁଥିବା ନାରୀ ଜୟତୁନ୍ ।

ଦାମ୍ପତ୍ୟର ମୋହଭଙ୍ଗ, ପ୍ରେମ ପ୍ରତି ଅବିଶ୍ୱାସ ଓ ବିପରୀତ ଅଭିରୁଚିକୁ ସହଜରେ ପ୍ରକାଶ କରିବାକୁ ନ ଦେଇ ନିଜ ଭିତରେ ଗୋପନ ରଖିବାକୁ ଚେଷ୍ଟା କରିଛି ଜୟତୁନ୍ । ମାତ୍ର ମିଆଁ ସବୁତକ କୋମଳ ପଣ ପତ୍ନୀର ପଣରେ ଓଜାଡ଼ି ଦେଇ ସତେଅବା ସବୁ ରୁକ୍ଷତା ନେଇ ବାହାରକୁ ବାହାରିଯାଏ । ହନୁ ନାଚି ନାଚି ଥକି ପଡ଼ିଲେ ବି ତା'ର ସେଇ ଥକା ଦେହମନ ଦେଖିପାରେ ନା ସିଏ । ଟିକିଏ ପ୍ରଶଂସା ଅପେକ୍ଷା ଆଦେଶ ହିଁ ଥାଏ କେବଳ ହନୁପାଇଁ । ସେଇ ଆଦେଶଟାକୁ ହନୁ ପ୍ରଶଂସା ଭାବେ ଗ୍ରହଣ କରିନିଏ । ଆଉ କେଉଁ ଦେଖଣାହାରୀକୁ ଖୁସି କରିବା ପାଇଁ ନୁହେଁ, ସେ'ତ କେବଳ ଲଲ୍ଲାମିଆଁକୁ ସନ୍ତୁଷ୍ଟ କରିବାକୁ ଯେତେକ କଷ୍ଟ ସହିଯାଏ । ମାଙ୍କଡ଼ ଦିଆଶି ଦ୍ୱାରା ଅନ୍ୟମାନଙ୍କ ମନ ଭୁଲାଉଥିବା ମିଆଁ ନିଜେ ବି ସେଇ ମଧୁର ମିଛକୁ ସାହାରା କରେ । ନିଜର ଇଙ୍ଗିତରେ ପରିଚାଳିତ ହେଉଥିବା ମାଙ୍କଡ଼କୁ ପୁଣି ପଚାରିବସେ –'ଆଚ୍ଛା ହନୁ ତୁ ସଚ୍ ବତାଇବୁ, ଏ ବିବି ସାହେବାର ବେଟା ପୈଦା ହୋବୋ? ବେଟା – ବେଟା – ଲଡ୍‌କା, ଲଡ୍‌କା? ବତା' । ଲଲ୍ଲାମିଆଁର ବି ସ୍ୱପ୍ନ ! କେବେ ଦିନେ ଜୟତୁନ୍ ତା ପୁଅର ମାଆ ହେବ !

ପିତୃତ୍ୱଲାଭରୁ କାଳେ ବଞ୍ଚିତ ହୋଇ ବିବିର ହୃଦୟରୁ ବିତାଡ଼ିତ ହୋଇଯାଇପାରେ ଏହିଭଳି ଏକ ଆଶଙ୍କାରେ ତା'ର ବ୍ୟକ୍ତିମନ ନିୟତ ମଥିତ ଓ ମ୍ରିୟମାଣ ହୋଇଛି । କିନ୍ତୁ ନିଜ ମନ ଭିତରେ ବହୁ ରୁଦ୍ଧକାମନା ଓ ଅବଦମିତ ଚିନ୍ତାରାଶିକୁ ସେ ଏକାନ୍ତ କୁଣ୍ଠିତ ଭାବେ ସହଚର ହନୁଟି ଆଗରେ ପ୍ରକାଶ କରିବାକୁ ଚେଷ୍ଟା କରିଛି। ଆତ୍ମପ୍ରକାଶର ନାନା ବିକୃତି ଓ ବ୍ୟର୍ଥତାକୁ ସାଙ୍ଗରେ ଧରି ବାଟ ଚାଲିଛି। ବ୍ୟକ୍ତି ସହିତ ବ୍ୟକ୍ତିମନର ଏଇ ନୀରବ ସଂଘର୍ଷ ଏକମାତ୍ର ବୁଝିବାକୁ ସତେଅବା ଏକମାତ୍ର ମାଙ୍କଡ ଦିଆଶି ହିଁ ମିଆଁ ଜୀବନରେ ଅଛି। କିନ୍ତୁ ହନୁ ଯେ ଭିତରେ ଭିତରେ ପ୍ରତିକ୍ରିୟାଶୀଳ ହୋଇଉଠେ, ସେକଥା ବୁଝିବାକୁ ଲଲମିଆଁର ତର ନଥିଲା। ହନୁକୁ ସାବାସି ଦିଏ । ସନ୍ତୁଷ୍ଟ ହୋଇ ପାରେନା ସେ । ଦୁଃଖ କରେ ମୁନୀବର ଉପର ଠାଉରିଆ ପ୍ରଶଂସାରେ । କ'ଣ ଏତିକି? ଏଇ କ'ଣ ତା'ର ଏତେ କଉଶଳର ମୂଳ? ଏଇ କ'ଣ ତା'ର ଜୀବନର ସାର୍ଥକତା-ଚରମ ଲକ୍ଷ୍ୟ ।

ହନୁପ୍ରାଣରେ ଅସନ୍ତୋଷ । ବିବି ମନରେ ଅବଶୋଷ । ବିବି ଆଖିରେ ପଡ଼େ ମିଆଁର ଦାଢିରେ ଚିକ୍ ଚିକ୍ କରୁଥିବା ଧଳାବାଳ । ତା ମନରେ ଅନୁଚାରିତ ଦ୍ୱନ୍ଦ୍ୱ । ମାଙ୍କଡ଼କୁ ନଚେଇ ଶିଖେଇବା ଆଉ ନଚେଇବା ଭିତରେ ଯେତିକି ପୌରୁଷ, ବାହାଦୁରୀ, ସେ କ'ଣ ବାର୍ଦ୍ଧକ୍ୟର ସବୁ କ୍ଷତକୁ ଲୁଚାଇ ଦେଇପାରେ? ପାରେ ବୋଲି ଭାବି ହୁଏତ ଲଡ଼ାମିଆଁ ଜୟତୁନକୁ ଏକୁଟିଆ ଘରେ ଛାଡ଼ି ରୋଜଗାର କରି ଆଣିବା ପାଇଁ ଚାଲିଯାଏ । ଖାଲି ଆପଣା ପେଟ ପାଇଁ ନୁହେଁ, ଏଇ ଜୟତୁନର ପେଟ ପାଇଁବି । ଆଉରି ତା'ସଉକି ବି ଅଛି । ମାଙ୍କଡର ସ୍ଥୁଳ ପ୍ରବୃତ୍ତି ,ମିଆଁର ବିବି ପ୍ରତି ଅତ୍ୟଧିକ ମୋହ ଓ ଜୟତୁନର ଜୀବନରେ ଯୌବନର ମାଦକତା ବୃଦ୍ଧି ପାରସ୍ପରିକ ଦୂରତା ବଢେଇବାରେ ଲାଗେ ।

ମଣିଷ ଜୀବନର ଅନ୍ଧାରୀ ବାସ୍ତବତା ଭିତରୁ ପଶୁ ଜୀବନର ମହତ୍ତ୍ୱପୂର୍ଣ୍ଣ ଦିଗର ଉଦ୍ଘୋଷଣା ଗାଳ୍ପିକ ମହାପାତ୍ରଙ୍କ ଗଳ୍ପମାନସର ବେଶ୍ ଚମତ୍କାର ଭାବେ ପ୍ରକାଶିତ ହୋଇଛି । ବିବି ଓ ମିଆଁର ଚରିତ୍ର ତା ପାଖରେ ଗୌଣ, ଅପ୍ରଧାନ ହୋଇଯାଇଛି। ପଶୁ ଜୀବନର ବିକ୍ଷୋଭ ଓ ସଂଘାତକୁ ଅତିକ୍ରମ କରି ତାର ଅନ୍ତଃବାସ୍ତବତାକୁ (Inner Reality) ହୋଇଛି ପ୍ରତିଫଳିତ । ପ୍ରାଧାନ୍ୟ ଲାଭ କରିଛି ସୁତୀକ୍ଷଣ୍ ମାନସ ବିଶ୍ଳେଷଣ । ଅନ୍ୟପକ୍ଷରେ ବିବି ଜୟତୁନ୍ ନୀରବତାରେ ନିରୁଦ୍ଦିଷ୍ଟ ହୋଇଯାଏ ।

ମଣିଷର ସଚେତନ ଭାବଭାବନା ଗୋଟିଏ କ୍ଷୀଣ ସାମାନ୍ୟ ସ୍ତର, ତା' ତଳକୁ ରାଶି ରାଶି ଅବଚେତନର, ଗହୀର, ଉପରକୁ ଅଧିଚେତନ (Super Consciousness) ର ବିସ୍ତୃତ ଆକାଶ, ତା'ର ପହୁଞ୍ଚ ଦୁଇଆଡକୁ ଅଛି । ବ୍ୟକ୍ତିସତ୍ତାକୁ ଭିତରୁ ଦେଖିଲେ କିମ୍ବା ସୃଷ୍ଟ ଚରିତ୍ରର ମନ ଭିତରୁ ଜଗତ ଓ ଜୀବନକୁ ଦେଖିଲେ, ଚେତନ-ଅବଚେତନ ମିଳାଇ ମଣିଷର ସମଗ୍ର ସତ୍ତାକୁ ଉପଲବ୍ଧି କରିବାକୁ ହେଲେ ଅନେକ ଅସଂଲଗ୍ନ ଚିନ୍ତାଚେତନା ମଧ୍ୟରୁ ବ୍ୟକ୍ତି ଚରିତ୍ରର ନିଗୁଢ ସ୍ୱରୂପଟି ଉଦ୍ଘାଟିତ ହୁଏ । ଉକ୍ତ ଗଳ୍ପର ଅନନ୍ୟତା ହେଉଛି ମଣିଷ ପରି ପଶୁର ଗହନ ମନର ଗୋପନକଥା ଓ ଜୀବନର ଅନ୍ତଃବାସ୍ତବତାକୁ ପ୍ରକାଶ କରିବା । ମାଙ୍କଡ ଦିଆଶି ଗଳ୍ପର ପଶୁ ମଣିଷ ନିର୍ବିଶେଷରେ ତିନୋଟିଯାକ ଚରିତ୍ରର ମନ ଭିତରେ ଅନେକ କଥା ଖେଳିଛି, ଅନେକ କଥା ଅକୁହା ରହିଯାଇଛି , ଅନେକ କଥା ବୁଝି ମଧ୍ୟ ବୁଝାଇ ହୋଇନି ।

ମନୋବୈଜ୍ଞାନିକ ଗଳ୍ପରେ ଆଦର୍ଶ ଜୀବନର ମହତ୍ତ୍ୱ ଅପେକ୍ଷା ବାସ୍ତବତା ପ୍ରତି ଅଧିକତର ଆନ୍ତରିକତା ଓ ନିଷ୍ଠା, ଚରିତ୍ରମାନଙ୍କର ମନଗହନର ନୂଆ ନୂଆ ରହସ୍ୟ ଉନ୍ମୋଚିତ କରିଥାଏ । ତାର ଯଥାର୍ଥତା ପ୍ରତିପାଦିତ ହୋଇଛି ଜୟତୁନ୍ ଅନ୍ତର୍ଦ୍ଧାନରେ । ଅନେକ ଅକୁହା କଥା ଓ ବ୍ୟଥା ସତେଅବା ପରସ୍ତ ପରସ୍ତ ହୋଇ ଖୋଲିଯାଇଛି ମିଆଁ ସାମ୍ନାରେ । ଜୟତୁନ୍ ଫେରେନି । ହେଲେ ହନୁର ଦେହମନ ଆହୁରି ଶକ୍ତ ବନ୍ଧନରେ ବାନ୍ଧି ହୋଇ ପଡ଼େ ଲଡ଼ାମିଆଁ ସହିତ । ବିବିର ଫେରିବା ନଫେରିବା କଥା ନେଇ ମିଆଁ ଗୁଆ ମୁଦା ବସାଏ । ହନୁ ହଁ, ନାଇଁରେ ଉତ୍ତର ରଖେ । ସେଇ ମିଛି ମିଛିକା ଖେଳରେ ଅନ୍ୟର ମନ ଭୁଲାଉଥିବା ମିଆଁ, ସତକୁ ସତ ହନୁର ମିଛକୁ ବିଶ୍ୱାସ କରିଯାଏ । 'ନାଇଁ' ମୁଦା ଉଠେଇଲେ ହନୁ ଖାଏ ମାଡ, ପୁଣି ହଁ ମୁଦାରେ ପାଏ ଗେଲ । ମାଙ୍କଡ଼ ସହେ, ସହିଯାଏ ମଣିଷ ନୁହେଁ ସେ ପଶୁ ବୋଲି । ବୁଢ଼ା ଆଖିରୁ ଲୁହ ବୋହିଯାଏ । ମାଙ୍କଡ଼ ଦିଆଶି ମୁହଁଟିକୁ ଢ଼ଳେଇ ଦେଇ ଲଡ଼ାମିଆଁର ଦାଢିଘେରା ବେକମୂଳରେ ଲୁଚାଇ ଦେବାକୁ ଚେଷ୍ଟା କରେ । ପେଟପାଟଣା ପାଇଁ ବେଉସା କରୁ କରୁ ଲଡ଼ାମିଆଁ ବୁଢ଼ା ହେଇଆସେ । ସନ୍ତାନ ପାଇଁ ବ୍ୟାକୁଳ ହୁଏ । ହନୁଠାରୁ ମିଛ ପ୍ରତିଶ୍ରୁତି ପାଇବାକୁ ଅନ୍ୟ ଅନ୍ୟ ବୋକା ମଣିଷଙ୍କ ପରି ଆଚରଣ କରେ । ହନୁ ଲଡ଼ାମିଆଁ ଛାତିତଳର ଦୁଃଖ ଅନୁଭବ କରି ଛାତି ଉପରକୁ ଆଉଜି ପଡ଼ିବାବେଳେ ବିବି ଦେହମନରେ କ୍ରମେ କ୍ରମେ ଦୂରେଇଯାଏ । ଯୁବତୀ ଜୟତୁନ ସହିତ ଦରବୁଢା ମିଆଁର ସମ୍ପର୍କ ବାଲିଘର ପରି ଭାଙ୍ଗି ଭାଙ୍ଗିଯାଏ । ସେଇ ଭାଙ୍ଗିବାପଣକୁ ଖୁବ୍ ଚତୁରତାର ସହିତ ହନୁ ହିଁ ଶୁଣିପାରେ । ଶୁଣିପାରେ ନା କିନ୍ତୁ ମିଆଁ, ଉଦାସପଣରେ ବି ସ୍ୱପ୍ନ ଦେଖେ । ଜୟତୁନ୍କୁ ନିବିଡ଼ ଭାବେ ଦେହ ମନରେ ଜଡାଇ ଧରିବାକୁ ଚାହେଁ । ମାତ୍ର ତା'ର ଆଶା, ଆଶଙ୍କାର ପରିଣତ ହୁଏ । କୋଉ ଦୂର ଦୂର ଗାଁରେ ମାଙ୍କଡ଼ ନଚାଇ ବୁଢ଼ାମିଆଁ ମାଙ୍କଡ଼ ଦିଆଶିକୁ ଧରି ଘରକୁ ଫେରିଦେଖେ, ଘରେ କବାଟବନ୍ଦ, ଜଞ୍ଜିର ଦିଆଯାଇଛି ବାହାରୁ ।

ମଣିଷ ଆଉ ପଶୁ ଭିତରେ ତଫାତ୍ ସ୍ପଷ୍ଟ ହୋଇଉଠେ । ପଶୁ ଥରେ ପୋଷା ମାନିଗଲେ, ମାଲିକର ଖୁସି ହିଁ ତା ପାଇଁ ସବୁକିଛି ହୋଇଯାଏ । ଅଥଚ ମଣିଷକୁ ଯେତେ ମନେଇଲେ ବି ତା'ର ମନକୁ ବାନ୍ଧି ହୁଏନା । ଜଣେ ଇଚ୍ଛା କରି ବିଶ୍ୱାସଘାତକତା କରେ ତ ଅନ୍ୟଟି ଅନିଚ୍ଛାରେ ବି ବୋଲ ମାନିନିଏ। ଲଡ଼ାମିଆଁ ଗାଏ ହନୁ ନାଚେ । କେତେ ରକମ ରକମ ନାଚ ନାଚେ । ଗଉଡୁଣୀ ହୁଏ, ଦହିବିକେ । ଚଉକିଆ ହୋଇ ପହରା ଦିଏ । ସାହେବ ହୋଇ ବିଚାର କରେ । ସାଧୁ ହୋଇ ମାଳା ଜପେ । ମୁସାଫିର ହୋଇ ପରଦେଶ ଯାଏ । ଭୁଆସୁଣୀ ହୋଇ ଘରକୋଣରେ ଲୁଚେ । କେତେପ୍ରକାର, କେତେଛଇ, ପ୍ରଥମେ ପ୍ରଥମେ ସେ ନାଚ ଭିତରୁ ହନୁ ଗୋଟିଏ ନୂଆ ରସ ପାଉଥିଲା । ମାଙ୍କଡ଼ ଜୀବନଟାର ଗୋଟିଏ ଟେକ, ଉନ୍ନତି ବା ମୋକ୍ଷ ପାଇଲା ପରି ନିଜକୁ ଟିକିଏ ବଡ଼ ମନେକରୁଥିଲା । କିନ୍ତୁ ଧିରେ ଧିରେ ତା'ର ସେ ନାଚରେ ଅବସାଦ ଆସିଲା । ନାଚିବାର ଏକାଟିଆ ଧାରାରେ ତା'ର ଗର୍ବ, ତା'ର ସୁଖ କୁଆଡ଼େ ହଜି ଯାଉଥିଲା । ଆପଣାକୁ ରଙ୍ଗ ବେରଙ୍ଗ କରି ବାରମ୍ବାର ସୁଆଙ୍ଗ

କରିବାରେ ପୌରୁଷ ନାହିଁ, ଥିଲେ ଅବା ସେହି ବେହିଆମି ଥିବ ସେ ଅନୁଭବ କରିବାକୁ ଲାଗିଲା । ତଥାପି ସେଇ ଅଲାଜୁକ ପଣକୁ ବିକି ଭାଙ୍ଗିବା ତା'ର ବେଉସା । ସେ ବୁଝୁ ନ ବୁଝୁ ସେ କଥା କିନ୍ତୁ ନାଚିଯାଏ ଗୋଟେ ଯନ୍ତ୍ରଭଳି।

ଯେତେ ଅନିଚ୍ଛାରେ ହେଲେ ମଧ ମାଙ୍କଡ଼ ଦିଆଶି ପୋଷା ମାନିଯାଏ । ନିଜର କାମ ପ୍ରତି, ନିଜର ପ୍ରଭୁପ୍ରତି ବିଶ୍ୱସ୍ତ ହେବାକୁ ଚେଷ୍ଟା କରେ । ଏହା ତା'ର ପଶୁ ପ୍ରବୃତ୍ତି। ମାଲିକ ମାଲିକାଣୀ ପାଖକୁ ଫେରିଆସିଲେ ସେ ଦୁହିଁଙ୍କ ଖୁସି ଦେଖି ଖୁସିହୁଏ । ଈର୍ଷା କରିବା, ପରର ଖୁସିରେ ଦୁଃଖି ହେବା ମଣିଷର ପ୍ରବୃତ୍ତି କିନ୍ତୁ ଗୋଟେ ପଶୁର ଏସବୁ ନଥାଏ । ତା'ର ସହଜାତ ପଶୁ ପ୍ରବୃତ୍ତି ତାଙ୍କୁ ପର ଆନନ୍ଦରେ ଉଲ୍ଲସିତ କରେଇଦିଏ, ନଚେଇ ଦିଏ । ପୁଣି ପରକ୍ଷଣରେ ସେ ମଣିଷର ଅନୁକରଣରେ ମଣିଷର ବୁଦ୍ଧିମିଶା ସହାନୁଭୂତିରେ ମଣିଷ ପରି ପର ଆନନ୍ଦରେ କାତର ହୋଇପଡ଼େ। ନିଜର ଦୁଇ ବିପରୀତ ବ୍ୟବହାରରେ ନିଜେ ବିଚଳିତ ହୋଇଯାଏ । ସେ ବିଚାର କରେ ମଣିଷଠାରୁ ହୁଏତ ପଶୁର ଜୀବନ ଭଲ । ମଣିଷ ପରି ପଶୁ ଦିହମନରେ ଏତେବେଶୀ ପାପ, ପରଶ୍ରୀକାତରତା ଅସହିଷ୍ଣୁତା ନାହିଁ ।

ପଶୁ ହେଲେ ବି ସେ ବିଚାରବନ୍ତ ହୋଇପଡ଼େ । ସେ ବୁଝିପାରେ ତା'ର ମାଲିକକୁ । ବିବି ପାଖରେ ନରମ କୋମଳ ହେଇ ଯାଉଥିବା ମିଆଁ, କେବଳ ସେହି ବିବି ଜୟତୁନ ପାଇଁ ହିଁ ବାହାରକୁ ଖୁବ୍ ରୁକ୍ଷ ହୋଇ ବାହାରିଯାଏ । ହନୁ ବୁଝିବାରେ, ଲଡ଼ାମିଆଁର ଯାହା କିଛି ଭଲ, ଯାହାକିଛି ସୁନ୍ଦର, ତାହା ଜୟତୁନ ଏକାଏକା ମାଡ଼ିବସି ଭୋଗ କରୁଛି । ତଥାପି ତା'ର ମନସାଧ ମେଣ୍ଟେ ନାହିଁ । ହନୁର ବିଚାରବୋଧରେ ତେଣୁ ସେ ରାକ୍ଷାସୀଟାଏ, ସେଥିପାଇଁ ଲଡ଼ାମିଆଁର ବାହାରଟା ଏତେ ଭୀଷଣ, ସେ ଘର ଭିତରେ ତା'ର ସବୁ କୋମଳତା, ସରସତା ଜୟତୁନ ଆଗରେ ଉଝେଇ ଦେଇ ବାହାରକୁ ନେଇଯାଏ ସବୁ କର୍କଶ ଓ ନିଷ୍ଠୁର ସ୍ୱଭାବ । ଏପରିକି ମିଆଁର ମନ ପରି ଦେହ ବି ଘରେ ଓ ବାହାରେ ଭିନ୍ନ ହୋଇଯାଏ । ତା'ର ଦାଢ଼ିଗୁଡ଼ାକ ଘର ଭିତରେ କେଡେ ସାଉଁଳିଆ, ନରମ କଅଁଳଥାଏ । ବାହାରକୁ ବାହାରିଲେ ସେଗୁଡ଼ାକ ଅତି ରୁକ୍ଷ, କର୍କଶ ଭାବରେ ଛଡ଼ା ଛଡ଼ା ହୋଇଯାଏ , ଯାହା ହନୁ କେବଳ ବୁଝିପାରେ । କାରଣ କେହି ବାହାରର ମଣିଷ ଲଡ଼ାମିଆଁର କର୍କଶପଣକୁ ଭୋଗୁ କି ନଭୋଗୁ ଭୋଗିବାକୁ ବାଧ୍ୟହୁଏ ହନୁ । ଏକଥା ବି ବୁଝେ ସିଏ ତା' ଉପରେ ଲଡ଼ାମିଆଁର ଯେଉଁ ନିଷ୍ଠୁର ବ୍ୟବହାର ସେଥିପାଇଁ କେବଳ ଜୟତୁନ ହିଁ ଦାୟୀ ।

ଗଳ୍ପଟିରେ ବଡ ସଯତ୍ନ ଗୋପନୀୟତାରେ ଯୌନଚେତନାର ପ୍ରବାହ ପରିଲକ୍ଷିତ ହୋଇଛି । କାରଣ ଏହା ମଣିଷର ଏକ ସହଜାତ ପ୍ରବୃତ୍ତି; ଜୀବନ ପ୍ରବାହର ଏକ ସ୍ୱାଭାବିକ ଧାରା ଏହାକୁ କଦାପି ଅସ୍ୱୀକାର କରାଯାଇ ନପାରେ । ତେଣୁ ଦୁଇ ପୁରୁଷ ଓ ନାରୀ ଚରିତ୍ରର ବ୍ୟକ୍ତିଗତ ସତ୍ତା, ଅନ୍ତର୍ମୁଖୀ ବାସ୍ତବତାକୁ ପ୍ରକାଶ କରିବାରେ ଗାଳ୍ପିକ କେଉଁଠାରେ କୃପଣତା ପ୍ରକାଶ କରିନାହାନ୍ତି । ପ୍ରତ୍ୟେକ ମଣିଷ ମନର ଗୋପନ ସ୍ତରରେ ଦେହଭୋଗ ଲାଳସାର ତୀବ୍ରତା ଅନୁଭବ କରେ । ସାମାଜିକ ପରିବେଷ୍ଟନୀରେ ଅନେକ ସମୟରେ ହୁଏତ ତାହା ପ୍ରକାଶିତ ହୋଇପାରେ ନାହିଁ । ତଥାପି ମାନସିକ ସ୍ତରରେ ତା'ର ଜ୍ୱାଳାକୁ ଜୀବନକୁ ଅନ୍ୟମନସ୍କ କରିଦିଏ । ତା'ର ବନ୍ୟ ଆଦିମ ପ୍ରବୃତ୍ତି ସାମାଜିକତାର ସମସ୍ତ ଆବରଣକୁ ଲଂଘି ଯିବାର ବ୍ୟଗ୍ରତା ପ୍ରକାଶ କରେ । ମିଆଁମୁଣ୍ଡରେ କେଇଟା ଧଳା ବାଳ ଦିଶିବା ସହିତ ନିଜର ରୂପଯୌବନରେ ବିଭୋର ଜୟତୁନ ଦାମ୍ପତ୍ୟର ସୀମାରେଖା ଡେଇଁଯିବାର କାର୍ଯ୍ୟକାରଣ ଯୋଡି ହୋଇଯାଏ ।

ପଶୁଟିର ସକଳ ଯୌନ ପ୍ରବୃତ୍ତି, ସ୍ୱାଭାବିକ ଆଚରଣ ମଣିଷର ଜଞ୍ଜିରରେ ବନ୍ଧା, ତେଣୁ ମାଙ୍କଡ଼ର ସବୁ କ୍ରୋଧ, ଘୃଣା, ଜୟତୁନ ଉପରେ ଅଜାଡ଼ି ହୋଇପଡେ । ବୋଧହୁଏ ବିବିର ଚରିତ୍ରକୁ ମିଆଁ ଯେତେ ବୁଝି ନପାରେ, ସେତେବେଶୀ ଜାଣିପାରିଥିଲା ହନୁ । ହନୁ ତୁଳନା କରେ ସିଏ ଗାଁ ଗାଁରେ ଭେଟୁଥିବା ଅନେକ ଜୟତୁନ ସହିତ ଲଡ଼ାମିଆଁର ବିବି ଜୟତୁନକୁ । ଘର କୋଣରୁ ଥାଇ କେତେ ବିବି ତା'ର ନାଚ ଦେଖନ୍ତି, ଖୁସି ହୁଅନ୍ତି । ଘରକୁ ସୁନ୍ଦର କରିବା ପାଇଁ ନିଜର ସୁନ୍ଦରପଣ ଘର ଭିତରେ ବିଛାଡ଼ି ଦିଅନ୍ତି । ଯାହାର ବିପରୀତ କ୍ରିୟାଟି ଥାଏ ଜୟତୁନ ଚରିତ୍ରରେ । ତେଣୁ ବିଶ୍ୱସ୍ତପଣରେ ବିବିକୁ ବଳିଯାଇପାରେ ହନୁ । ପଶୁବୁଦ୍ଧିର ବିଚାରରେ ନାରୀଟି ଏକାନ୍ତ ବିବେକହୀନା ହୋଇଯାଏ । ଦୁନିଆରେ ଏମିତିକା ଜୟତୁନ ସବୁ ଖାଲି ଘରକୁ ଅସୁନ୍ଦର କରନ୍ତି ନାହିଁ, ସମାଜକୁ ବି ଅସୁନ୍ଦର କରନ୍ତି, ମଣିଷ ଜୀବନକୁ ଅସୁନ୍ଦର କରିପକାନ୍ତି ଆଉ ସଂସାରର ମଧ ଅମଙ୍ଗଳ କରନ୍ତି ।

ପାଶବିକତା, ମାନବିକତାଠାରୁ ମହୀୟାନ ହୋଇଯାଏ । ମଣିଷର ମନ ଆଉ ପଶୁମନର ତଫାତ୍ ସ୍ପଷ୍ଟ ହୁଏ । ମଣିଷ ବିବେକକୁ ବଳି ଚଢ଼ାଇ ପାରେ ଅକ୍ଳେଶରେ, ମାତ୍ର ବିବେକ, ବିଚାର ବିଶ୍ଳେଷଣ କରିପାରୁନଥିବା ପଶୁ ବିବେକର ଲକ୍ଷ୍ମଣରେଖା ଆଦୌ ଟପିପାରେ ନାହିଁ ସେ ତା'ର ଅର୍ଥ କି ମୂଲ୍ୟ ନ ଜାଣିଲେ ବି ସେହି ଅଙ୍କ ପଶୁପଣରୁ ଦୂରକୁ ଯାଇପାରେ ନାହିଁ । ପଶୁ ହିଁ ମଣିଷକୁ ଶିଖାଇ ଦିଏ ମୂଲ୍ୟବୋଧର ତୁଚ୍ଛା ଢ଼େଙ୍ଗୁରା ପିଟୁଥିବା ମଣିଷ ତା'ର ମୂଲ୍ୟ ଜାଣେ ନାହିଁ । ସ୍ୱାର୍ଥପାଇଁ ସେ ସମସ୍ତ ସୀମା ଲଙ୍ଘନ କରିପାରେ । ସବୁ ସମ୍ପର୍କକୁ ବଳି ଚଢ଼ାଇପାରେ । ସବୁ ଲକ୍ଷ୍ମଣରେଖାକୁ ହାତରେ ପୋଛି ଲିଭାଇ ଦେଇପାରେ । ହେଲେ ପଶୁ ତାହା କରିପାରେ ନାହିଁ । ତେଣୁ ମଣିଷ ହେବା ପାଇଁ ଶକ୍ତ ଚେତାବନୀର ଚାବୁକ୍ କେବେ ଜମିଦାର ରୂପୀ (ଗଳ୍ପ-ମାଂସର

ବିଳାପ) ସୌଖିନ୍ ସମ୍ଭ୍ରାନ୍ତ ମଣିଷ ଦେହରେ ତ କେବେ ଜୟନ୍ତୁନ୍ ନାମ୍ନୀ ଅବିଶ୍ୱସ୍ଥ ଅନମନୀୟ ନାରୀ ଦେହରେ ବାଜେ । ଅନ୍ୟ ସମସ୍ତ ମାନବତାର ଜୟ ଜୟକାରୀମାନଙ୍କୁ ମାନବତାର ପ୍ରକୃତ ଅର୍ଥ ବୁଝେଇ ଦେବାକୁ ଅଙ୍ଗୁଳି ନିର୍ଦ୍ଦେଶ କରେ ସେଇ ସରଳ ପଶୁମାନଙ୍କ ଆଡ଼କୁ ।

**ସହାୟକ ଗ୍ରନ୍ଥସୂଚୀ:**

୧. ସ୍ୱାଇଁ , ପ୍ରସନ୍ନ କୁମାର , ଗୋପୀନାଥଙ୍କ କ୍ଷୁଦ୍ରଗଳ୍ପରେ ମାନବେତର ଚରିତ୍ର ,ଶାରଦୀୟ ଇସ୍ତାହାର ୨୦୧୮

୨. ମହାପାତ୍ର, ନିତ୍ୟାନନ୍ଦ ଗଳ୍ପ 'ମାଙ୍କଡ଼ ଦିଆଶି', କଥା ପତ୍ରିକା ୨୦୧୮

୩. Sigmund Freud, Agerneval Introducing to psycho analysis, Ninth lecture